# ପିନୁ ଅଜାର ପୋଥି ଦେଖା



# ହନୁ ଅଜାର ପୋଥି ଦେଖା

ଲେଖକ :

ଶ୍ରୀ ରବନାରାୟଣ ମେଣ୍ଡୁଳୀ

ପ୍ରକାଶକ :

କେ. ମହାପାତ୍ର ଏଣ୍ଡ କୋ.

ଗ୍ରନ୍ଥସାଥୀ ଅଫିସ, କଟକ-୨

ମୂଲ୍ୟ ଟ ୨.୦୦

# ହନୁ ଅଜାର ପୋଥି ଦେଖା

ଲେଖକ :
ଶ୍ରୀ ରଭନାରାୟଣ ମହାନ୍ତି

ପ୍ରକାଶକ :
କେ. ମହାପାତ୍ର ଏଣ୍ଡ କୋ.
ନମଚଜ୍ଜଡ଼, କଟକ-୧

ବ୍ଲକ :
ପ୍ରସେସ୍ ଆଣ୍ଡ ଅଫ୍‌ସେଟ୍ କୋ.
ଲୁଢମାଚୌକ, କଟକ-୧

ମୁଦ୍ରଣ :
ଛାତ୍ରସାଥୀ ପ୍ରେସ
କାଳୀଗଳି, କଟକ-୨

ମୂଲ୍ୟ ଦୁଇ ଟଙ୍କା ମାତ୍ର




ଗୁରୁଜୀ କହିଲେ, ଆରେ ସୁନା ! ତୁ ଗପ ଜାଣିଛୁ ?

ସୁନା କହିଲା, ଗୁରୁଜୀ ! ମୁଁ ଜାଣିନି ।

ଗୁରୁଜୀ—ତେବେ ତୁ ଭଲ ପିଲା ନୋହୁ ।

ସୁନା—ଗୁରୁଜୀ ! ଯୋଉ ପିଲା ଗପ ଜାଣିଥାଏ, ସିଏ କ'ଣ ଭଲ ପିଲା କି ?

ଗୁରୁଜୀ—ଗପ ଜାଣିଥିବା ପିଲା ଭଲ ପିଲା ନୁହେଁ ଯେ— ।

ସୁନା—ଆଉ କିଏ ଭଲ ପିଲା ତେବେ ?

ଗୁରୁଜୀ—ଶୁଣ, ଯୋଉ ପିଲାର ଆଖିରେ ଲେଞ୍ଜରା ଲାଗେନି । କାନମୂଳ ଆଉ ବେକ ତଳରେ ମଇଳା ରହେନି । ଦାନ୍ତ, ନାକତଳ ସଫା ରହେ । ନଖ ଜମା ବଢ଼େଇ ଦିଏନି । ବାପା ମା'ଙ୍କ ବୋଲ-ମାନେ, ଭଲ ପାଠ ପଢ଼େ । ଗୁରୁଜୀ ତାକୁ ଆଦର କରନ୍ତି । ସେ ଭଲ ପିଲା ।

ସୁନା—ଯିଏ ବରଡ଼ା ପତର ପେଁକାଳି ବଜାଏ । କୁଣ୍ଡେଇ ବାଉଁଘର କରେ । ଗାଁ ଦାଣ୍ଡରେ ଧୂଳିଘର ଖେଳେ । ଘରେ ଜମା ବସ୍ତାନି ଖୋଲେନି ସିଏ............

ଗୁରୁଜୀ—ସେ ଭଲ ପିଲା ନୁହେଁ ।

ସୁନା— ଗୁରୁଜୀ ! ଆଜି ମଜାଳିଆ ଗପଟିଏ କୁହନ୍ତୁ ।

ଗୁରୁଜୀ— କି ଗପ ?

ସୁନା – ଯୋଉଟା ମୋ ମନକୁ ପାଇବ ।

ଗୁରୁଜୀ— ହେଉ ହେଲା । ଆଜି ତୋତେ "ହନୁ ଅକାର ପୋଥି ଦେଖା" ଗପଟି କହିବ । ତେବେ ଶୁଣ୍ ।

ଗୋଟିଏ ଗାଁରେ ପିଲାଟିଏ ଥିଲା ।



ସୁନା— ତା'ନାଁ ?

ଗୁରୁଜୀ—ତା' ନାଁ ବାଇଆ ।

ସୁନା—ସେ କ'ଣ ସତରେ ସତ ବାଇଆ ?

ଗୁରୁଜୀ—ନା ।

ସେ ବାପା, ମା'ଙ୍କ ବୋଲ ମାନେନ । ଅଝଟ କରେ । ଇସ୍କୁଲକୁ ପାଠ ପଢ଼ି ଯାଏନ । ଏଣେ ତେଣେ ବୁଲେ । ଏଥିପାଇଁ ତା ବାପା, ମା ତାକୁ ବାଇଆ ବୋଲି ଡାକୁଥିଲେ ।

ସୁନା—ବାଇଆ କେଉଁ କ୍ଳାସରେ ପାଠ ପଢୁଥିଲା ?

ଗୁରୁଜୀ—ପ୍ରଥମ କ୍ଳାସରେ ।

ସୁନା—ସେଠୁଁ କ'ଣ ହେଲା ?

ଗୁରୁଜୀ—ବାଇଆ କିଛିଦିନ ପାଠପଢ଼ି ଗଲା । ଆଉ ଜମା ଗଲାନି । ଚଗଲା ପିଲାଙ୍କ ସହିତ ସାଙ୍ଗ ହେଲା । ଏଣେ ତେଣେ ବୁଲିଲା । ଗାଧୋଇଲା ସମୟରେ ଗାଧୋଇଲାନି । ଖାଇବା ସମୟରେ ଖାଇଲାନି ।

ସୁନା—ତେବେ ସେ କ'ଣ କଲା ?

ଗୁରୁଜୀ—ଶୁଣ ।

ଦୀନା ସେଠୀ ପୁଅ ବାଇଆ,
ଅଟେ ସେହି ପରା ଘାଉଆ ।
ବାଇଆ ବୁଲଇ ଗାଁ ଦାଣ୍ଡେ,
ଭଙ୍ଗା ଖପରାକୁ ଧରି ମୁଣ୍ଡେ ।
ଛିଣ୍ଡା କୋତରାର ଲୁଗା ଖଣ୍ଡେ,
ତା' ଅଣ୍ଟାରୁ ଲମ୍ବିଛି ଗୋଖଣ୍ଡେ ।
ଭୂଇଁରେ ଯାଉଛି ଘୁଷୁରି,
କଥା ଦେଉଅଛି ପାଶୋରି ।
ମନ କଲେ ଗଡ଼େ ମାଟିରେ,
କାଗଜ ପୂରାଏ ପାଟିରେ ।



ଗୁଣ୍ଡୁଚ ମୂଷାକୁ ଗୋଡ଼ାଏ,
ବେଙ୍ଗୁଲୀ ନାନୀକୁ ଯାବୁଡ଼େ ।

ସୁନା—ତା’ ମା କାନ୍ଦେ କି ନା ?

ଗୁରୁଜୀ—
ମା’ ଡାକନ୍ଦଏ ବାଇଆ,
ଘରକୁ ବେଗେରେ ଚାଲଆ ।
ତୋ ସାନ ଭାଇ କାନ୍ଦୁଛି,
ବାଛି ଖାଇ ଡେବାଲି ଡାକୁଛି ।

ବାପା ଦାନା ନାହିଁ ପେଟରେ,
ଲଗିଲାଣି ଅଣ୍ଟା ଖଟରେ ।

ପଣ୍ଡୁ ଭେ଼ ଭେ଼ କରଇ,
ମିଲ ମେଁ ମେଁ ରଡ଼ଇ ।

ଝଡ଼ ବତାସଟା ଆସେ ରେ,
ବାଇଆ ପଶିଲା ବାସେ ରେ ।

ସୁନା—ବାଇଆକୁ ତା' ବାପା କ'ଣ ବୋଲି ଡାକିଲା ?

ଗୁରୁଜୀ—ତା' ବାପା ଖଟରୁ ଆଇ ଡାକିଲା ।

ବାପା ଡାକଦଏ ପୁଅ ରେ,
ନ ଯାଆ ନଦୀର ସୁଅରେ ।

ଚୁଲି ଜଳ ନାହିଁ ଘର ରେ,
ଶୁକୁଟା କାନ୍ଦୁଛି ଦୁଆରେ ।

ଭଉଣୀ ରତନ କାନ୍ଦୁଛି,
ବାଇ ଭାଇ ବୋଲି ଡାକୁଛି ।

ପଣ୍ଡୁ ଭେ଼ ଭେ଼ କରଇ,
ମିଲ ମେଁ ମେଁ ରଡ଼ଇ ।

ସୁନା—ସେଠୁଁ କ'ଣ ହେଲା ?

ଗୁରୁଜୀ—ସେ ଦନ କଳାହାଣ୍ଡିଆ ମେଘ ଉଠାଇ ଆସିଲା । ବିଜୁଳି ଚକ୍‌ଚକ୍ ମାରିଲା । ଘୋର ବରଷା ହେଲା । ବାଇଆ ଘରୁ ବାହାର କୁଆଡ଼େ ଚାଲିଗଲା । ଏତିକିବେଳେ ଅନ୍ଧାର ମାଡ଼ି ଆସିଲା । ବାଇଆର ମା, ବାପା ବାଇଆକୁ ଡାକି ତୁନ୍ନତାନ ହୋଇ ଘରକୁ ଫେରିଲେ ।

ସୁନା—ସେଠୁ କ'ଣ ହେଲା ?

ଗୁରୁଜୀ—ବରଷା ଛାଡ଼ିଗଲା । ଫରଚ୍ ହୋଇଗଲା । ତା ବାପା ଘରେ ଦେଖିଲା ଯେ, ପଣ୍ଡୁ ନାହିଁ କି ମିଲି ନାହିଁ ।

ସୁନା—ଗୁରୁଜୀ ! ବାଇଆ କୋଉଠି ରହିଲା ? ପୁଣି ପଣ୍ଡୁ ଆଉ ମିଲି କୁଆଡ଼େ ଗଲେ ?

ଗୁରୁଜୀ—ଗାଁ-ମୁଣ୍ଡ ବରଗଛ ମୂଳରେ ବାଇଆ ବସିଛି । ବରଷାମାଡ଼ ଖାଇଛି । ପାଣି ସରସର ହୋଇଛି । ଶୀତରେ ଥରୁଛି । ତାଙ୍କ ପଣ୍ଡୁ କାନ ପାଖରେ କ'ଣ ଥିର ଥିର କହୁଛି ।

ବାଇଆ ନନାରେ ବାଇଆ ନନା,
ବୁଲି ବୁଲି ହେଲୁ ବାଇଆ ସିନା
କଥା ପଦଟିଏ କହିବି ତୋତେ,
ପଣ୍ଡୁକୁ କି ଭୁଲି ଗଲୁଟି ସତେ ।
ପାଠ ଶାଠେ ନାହିଁ ବୁଲିବା ମନ,
କଲୁଟି ଧିଆନ ବାଇଆ ଜାଣ ।
ଗାଧୁଆ ପାଧୁଆ କଲୁ ତ ନାହିଁ,
ମନକୁ ରେ ତୁହି କଲୁ ରେ ବାଇ ।
ହନୁ ବୁଢ଼ା ଅଜା ପାଖକୁ ନେବ,
ଔଷଧ ଦେଇଣ ଭଲ କରିବ ।

ସୁନା—ପଣ୍ଡୁର କଥା ଶୁଣି ବାଇଆ କ'ଣ କହିଲା ?

ଗୁରୁଜୀ—ମୁଣ୍ଡ ଟୁଙ୍ଗାରିଲା ।

ସୁନା—ମିଲି କ'ଣ କଥା ପୁଣି ବାଇଆକୁ କହିଲା ?

ଗୁରୁଜୀ—ମିଲି ପଛ ପାଖରେ ଥିଲା । କାନକୁ ଫଟ୍‌ଫଟ୍ କରି ବାଇଆ କାନରେ କ'ଣ ଫୁସ୍ ଫୁସ୍ କରି କହିଲା ।



ବାଇଆ ନନାରେ ବାଇଆ ନନା,
ବୁଲ ବୁଲ ହେଲୁ ବାଇଆ ସିନା ।
କଥା ପଦଟିଏ କହିବ ତୋତେ,
ମିଳକୁ କି ଭୁଲ ଗଲୁଟି ସତେ ।
ପାଠ ଶାଠେ ନାହିଁ ବୁଲନ୍ଦା ମନ,
କଲୁଟି ଧିଆନ ବାଇଆ ଜାଣ ।
ଗାଧୁଆ ପାଧୁଆ କଲୁ ତ ନାହିଁ,
ମନକୁ ତୋହର କଲୁ ରେ ବାଇ ।
ଠେକୁଆ ମାଉସୀ ପାଖକୁ ନେବ,
ଔଷଧ ଦେଇଣ ଭଲ କରିବ ।

ଗୁରୁଜୀ—ବୁଝିଲୁ ସୁନା ! ମିଲର କଥା ଶୁଣି ବାଇଆ ମୁଣ୍ଡ ଟୁଙ୍ଗାରିଲା ।

ସୁନା – ସେଥିଁରୁ କ'ଣ ହେଲା ?

ଗୁରୁଜୀ—ଏତିକିବେଳେ ହନୁ ବୁଢ଼ା ହୁଁ କରି ସେହି ବରଗଛ ଡାଳରୁ ତଳକୁ ଡେଇଁ ପଡ଼ିଲା । ବାଇଆ ହାତକୁ ଖପ୍ କରି ଧରି ଉଠାଇ ନେଲା । ଗୋଟିଏ ହାତରେ ଧରି ଆଗେ ଆଗେ ଚାଲିଲା । ବାଇଆ ପଛେ ପଛେ ପାଦକୁ ଏପଟ ସେପଟ ପକାଇ ଚାଲିଲା । ତା' ବାଁ କଡ଼ରୁ ଠେକୁଆ ମାଉସୀ



ଗୋଟାଏ କୁଦାମାରି ବାହାରିଲା । ସେ କଡ଼ରୁ ଏ କଡ଼ ହୋଇ କୁଦା ମାରି ମାରି ଚାଲିଲା ।

ସୁନା—ସେଠୁଁ କ'ଣ ହେଲା ?

ଗୁରୁଜୀ—ବାଇଆ ଆଉ କିଛି କହି ପାରିଲାନି । ହନୁ ବୁଢ଼ା ତା' ହାତକୁ ଯୋର୍‌ରେ ଧରିଛି । ଠେକୁଆ ଆଗେ ଆଗେ ଡିଆଁ ମାରୁଛି । ବାଇଆ ମନକୁ କ'ଣ ଛୁଇଁଲା କେଜାଣି । ସେ କର୍ କର୍ ହୋଇ ହସିଲା । ବାଇଆ ତୁଣ୍ଡରୁ ଗୀତ ପଦଟିଏ ବାହାରିଲା—

ହଇ କିଲୋ ! ଠେକୁଆ ମାଉସୀ,
କଅଁଳ ଘାସକୁ ଖାଉ ତୁ ବସି ।

ପୁଣି କହିଲା— ହନୁ ଅଜା ରେ
ଦୁଇ ଗାଲେ ଦୁଇ ବଧା ରେ ।

ଏ କଥା ହନୁ ବୁଢ଼ାର ମନକୁ ପାଇଲା । ସେ ହୁଁ କଲା ।

ସୁନା—ପଣ୍ଡୁ ଆଉ ମିଲି ବାଇଆ ସାଙ୍ଗରେ ଗଲେ କି ନା ?

ଗୁରୁଜୀ— ପଣ୍ଡୁ ଆଉ ମିଲି ଅଧବାଟଯାଏ ନେଇ ଛାଡ଼ିଲେ । ତାଙ୍କ ଗାଁ ପାଞ୍ଚଗଛିଆ ତାଳବଣରୁ ଜଙ୍ଗଲ ଆରମ୍ଭ ହୋଇଛି । ପଣ୍ଡୁ ଆଉ ମିଲି ବାଇଆର ଶୁଭ ମନାସି କହିଲେ—

ବାଇଆ ନନାରେ ବାଇଆ ନନା,
ଶୁଭ ମନାସୁଛୁଁ ପାଲଟ ସୁନା ।
ଭଲ ହୋଇ ଯେବେ ତୁହି ଫେରିବୁ,
ଗାଁ'ରେ ଆଦର ତୁହି ପାଇବୁ ।

ପୁଣି ହନୁ ଅଜାକୁ କହିଲେ--- ହନୁ ଅଜାରେ ହନୁ ଅଜା,
ବାଇଆକୁ ତୁହି କର ତାଜା ।

ଏହା କହି ସେମାନେ ହନୁ ଅଜାଠୁଁ ମେଲାଣି ମାଗି ସେଠାରୁ ଫେରିଲେ । ଏତିକିବେଳେ ତାଳଗଛରେ ବାଇ ଚଢ଼େଇ ତା' ବସାରେ ଦୋହଲି ଦୋହଲି ଗୀତପଦଟିଏ ବୋଲିଦେଲା ।

ବାଇଆ ମିତ ହେ ! ବାଇଆ ମିତ,
ଆସ ହେ ବସାକୁ ଗାଇବା ଗୀତ ।

ଏତକ୍କବେଳେ ବାଇଆ ତୁଣ୍ଡରୁ କଥା ପଦଟିଏ ବାହାର ପଡ଼ିଲା ।

ଅଜା କିଏ କହୁଛି—

ହନୁ ଅଜା କହିଲା—ତୋ ମିତ ।

ଚଲ ମାଈଁ ତାଳଗଛରେ ଚେଁ ଚେଁ କରୁଥିଲା ।

ବାଇଆ ପଚାରିଲା, "ଅଜା ! କିଏ ଚେଁ ଚେଁ କରୁଛି ?

ହନୁ ଅଜା କହିଲା—ତୋ ମାଈଁ ।

ପୁଣି ବାଇଆ ତୁଣ୍ଡରୁ ଗୀତ ପଦଟିଏ ବାହାରିଲା ।

ଚଲ ମାଈଁ ଲୋ ଚଲ ମାଈଁ,
ମୋ' ଲାଗି ଚିନ୍ତା କରୁ ନାହିଁ ।

ଚଲ ମାଈଁ କହିଲା— ସାତ ସମୁଦ୍ରର ସେ ପାରି,
ମାମୁଁ ଯାଇଥିଲା ତୋହର ।
ଗଛରେ କଅଁଳେ ପତର,
ଶୁଖେ ନାହିଁ କେବେ ମାତର ।
ରୋଗ ଧରେ ନାହିଁ କାହାକୁ,
ପିଅନ୍ତି ପାଠର ପଣାକୁ ।
ପୋଥି ନେଇ ଏକ ଆସିଛି,
ରୋଗ-ବାଗ ଲେଖା ହୋଇଛି ।

ବାଇଆ କହିଲା—ମାଈଁ ଲୋ, ମୁଁ ତ ପାଠ ପଢ଼ିନି । କିପରି ପୋଥି ପଢ଼ିବି ।

ଚଲ ମାଈଁ ହନୁ ଅଜାକୁ କହିଲା—

ହନୁ ଅଜା ଏଇ ପୋଥି ନେଏ ରେ,
ଧିଆନ କରଣ ତୁହି ପଢ଼ ରେ,
କିସ ବେମାର
ବାଇଆ ଘାର,
ହୋଇଛି ବୋଲି ଯେ ଦୁଃଖ ଆମର

ପୋଥିକ ପର୍ଢ଼
ବେମାର ମାଢ଼ୁ
ଔଷଧ ଦେଇଣ ବାନ୍ଧ ଦଉଡ଼ ।

ଚଲ ମାଇଁ ଏହା କହ ସଟ୍‌କନା ତାଳପତର ପୋଥିଟିଏ ତଳକୁ ଖସାଇ ଦେଲା ।



ସୁନା କହଲା—ଗୁରୁଜୀ ! ସେଠୁଁ କ'ଣ ହେଲା ?

ଗୁରୁଜୀ—ବାଇଆ ହନୁ ଅଜାକୁ କହଲ—ଅଜା ! ମୋ ହାତ ଆଉ ଧରନା । ମୁଁ ଏଣିକ ଏଠାରୁ ଚାଲିଯିବ । ହନୁ ଅଜା ବାଇଆର ହାତ ଛାଡ଼ିଦେଲା । ସେ ଖପ୍‌କନା ଡଆଁ ମାର ପୋଥିଟିକୁ ହାତରେ ଧର ଖୋଲଦେଲା ।

ବାଇଆ କହିଲା—ହନୁ ଅଜା ! ତୁ ପାଠ ପଢ଼ି ଜାଣିଛୁ ?

ହନୁ ଅଜା କହିଲା—ଆରେ ! ତୁ ପାଠ ପଢ଼ିନୁ ବୋଲି ମୁଁ କ'ଣ ପଢ଼ିବି ?

ବାଇଆ କହିଲା—ଅଜା ! ପୋଥିରେ କ'ଣ ଲେଖାଅଛି, ଟିକିଏ ପଢ଼ ।

ହନୁ ଅଜା କହିଲା—ନାତ ରେ ! ଖାଲି ଆଖିରେ ମୋତେ ଅକ୍ଷର ଦିଶେନି ।
ଏଣେ ବୟସ ହେଲା ଷାଠିଏ ଉପରେ । ଘରେ ଚଶମା ଲଗାଇ ପଢ଼ିବ ।

ହନୁ ଅଜା କହିଲା—ବାଇ ନାତ ! ଖରା ମାଡ଼ି ଆସିଲାଣି, ଏଣେ ବେଳ ହେଲାଣି,
ବେଗେ ବେଗେ ଚାଲ ।

ବାଇଆ କହିଲା—ଅଜା ! ତମ ଘର ଏଠୁ କେତେ ବାଟ ରହିଲା ?

ହନୁ ଅଜା କହିଲା—ଘର ବହୁତ ବାଟ ରେ । ଝରଣା କୂଳ । ଯୋଉଠି ଫଳ ପାଚି
ଆପେ ଆପେ ଝରିପଡ଼େ । ଥିର ଥିର ପବନ ବହେ । ଫୁଲ ବାସନାରେ
ମହକି ଉଠେ ।

ହନୁ ବୁଢ଼ା ଆଗେ ଆଗେ ଜଙ୍ଗଲ ଭିତରକୁ ଚାଲିଲା । ଠେକୁଆ ମାଉସୀ
କୋଉଠି ଥିଲା କେଜାଣି, ଭୁସ୍କିନା ବାହାରି ଆଗକୁ ଡିଆଁଟାଏ
ମାରିଦେଲା ।

ସୁନା—ସେଠୁ କ'ଣ ହେଲା ଗୁରୁଜୀ !

ଗୁରୁଜୀ—କେତେ ଝରଣା, କେତେ ଜଙ୍ଗଲ ପାରି ହୋଇ ହନୁ ଅଜାର ଘରେ
ବାଇଆ ପହଞ୍ଚିଲା । ବାଇଆର ଆଈ ଘରେ ଥିଲା । ସେ ଜଙ୍ଗଲରୁ ପାଚିଲା
ଫଳ ତୋଳି ଆଣି ଘରେ ସାଇତି ରଖିଥିଲା ।

ସୁନା—ଗୁରୁଜୀ ! ହନୁ ବୁଢ଼ାର ଘର ଆମ ଘରପରି କି ?

ଗୁରୁଜୀ– ନା ।
ଝରଣାକୂଳ, ଝଙ୍କାଳିଆ ଗଛ ଉପରେ । ସେଇଟା ତାଙ୍କର ଘର ।

ସୁନା—ବାଇଆ କୋଉଁଠି ରହିଲା ?

ଗୁରୁଜୀ—ଗଛ ମୂଳରେ ସୁନ୍ଦର ପଥରକୁ ପଥର ଲଗାଲଗି । ଛାତ ପଥରରେ
ହୋଇଛି । ବରଷା ପାଣି ଟୋପାଏ ସେଠି ପଡ଼େନି । ସେଠି ବାଇଆ
ରହିଲା ।

ସୁନା କହିଲା—ଗୁରୁଜୀ ! ବାଇଆ କଣ ଖାଇଲା ?

ଗୁରୁଜୀ—ବାଇଆ ପାଚିଲା ଫଳ ଖାଇଲା । ଶୋଷକଲେ ଝରଣା ପାଣି ପିଇଲା । ଠେକୁଆ ମାଉସୀ କଅଁଳ ଘାସ ଆଣିଦେଲା । ବାଇଆ ପଥର ଉପରେ ଘାସ ବିଛାଇ ଶୋଇଲା ।

ସୁନା—ହନୁବୁଢ଼ା କୋଉଠି ଶୋଇଲା ?

ଗୁରୁଜୀ—ହନୁବୁଢ଼ା ଗଛ ଉପରେ ନ ଶୋଇ ସେ ତଳେ ବାଇଆ ପାଖରେ ଶୋଇଲା ।

ସୁନା—ସେଠୁ କଣ ହେଲା ଗୁରୁଜୀ !



ଗୁରୁଜୀ—ରାତି ପାହିଗଲା । ଫରଚା ହୋଇଗଲା । ବାଇଆ ଉଠିଲାବେଳକୁ ହନୁ ଅଜା ଆଖିରେ ଚଶମା ଲଗାଇ ପୋଥି ମେଲାଉଛି ।

ବାଇଆ ପଚାରିଲା, "ଅଜା ! ମୋ ବେମାର କଥା ପୋଥିରେ ଲେଖାଅଛି କି ନା ?"

ହନୁଅଜା କହିଲା—ହଁ, ଏଥିରେ ଲେଖାଅଛି ।
ବାଇଆ କହିଲା—କି ବେମାର ?
ହନୁଅଜା କହିଲା—ଭୁଲା ବେମାର ।
ବାଇଆ କହିଲା—ଏହା କପର ହେଲା ?

ହନୁଅଜା କହିଲା—ଚଗଲା ପିଲାଙ୍କ ସହିତ ସାଙ୍ଗ ହୋଇ ପାଠ ପଢ଼ି ଯାଇ ନ ଥିବାରୁ ଏ ବେମାର ହେଲା ।

ବାଇଆ କହିଲା—ଔଷଧ କ'ଣ ଲେଖାଅଛି ?
ହନୁଅଜା କହିଲା—ହଁ, ପାଠପଣା ଔଷଧ ।
ବାଇଆ କହିଲା—କୋଉଠି ମିଳିବ ଅଜା ?
ହନୁଅଜା କହିଲା—ଏ ପାହାଡ଼ର ସେ' ପାରିରେ ।
ବାଇଆ କହିଲା—ମିଠା ଲାଗେ କି ନା ?
ହନୁଅଜା କହିଲା—ମିଠା ପଚାରୁଛୁ ? ଏହା ମହୁଠାରୁ ଆହୁରି ମିଠା ।
ବାଇଆ କହିଲା—ଅଜା ! ମୁଁ ପାଠପଣା କେବେ ପିଇବାକୁ ଯିବି ?
ହନୁଅଜା କହିଲା—ଆଜି ରାତିଟା ଗଲେ ସକାଳରୁ ବାହାରିବା ।

ସୁନା—ସେଠୁ କ'ଣ ହେଲା ?

ଗୁରୁଜୀ—ସଞ୍ଜ ହେଲା । ବାଇଆ ଓ ହନୁଅଜା ଫଳମୂଳ ଖାଇ ଶୋଇଲେ । ରାତି ହେଲାବେଳକୁ ଏଁ—ଏଁ—ଏଁ କ'ଣ ରଡ଼ି ଶୁଣାଗଲା ।

ବାଇଆ କହିଲା—ଅଜା ! ଏ କ'ଣ ରଡ଼ି ?
ହନୁଅଜା କହିଲା—ଏ ହେଉଛି ବଣ ମହିଷର ରଡ଼ି ।
ବାଇଆ କହିଲା—ଅଜା ! ଏ ମାରେ କି ନା ?
ହନୁଅଜା କହିଲା—ହଁ, ଶିଙ୍ଗରେ ଭୁଷିଦିଏ । ତୁ ଚୁପ୍‌ଚାପ୍ ହୋଇ ଶୋଇପଡ଼ ।

ବାଇଆ କହିଲା—ସେ କାହିଁକି ଏଠାକୁ ଆସିଛି ?

ହନୁଅଜା କହିଲା—ଆରେ ତୁ କିଛି ଜାଣୁନା । ସେ ପର ଝରଣାକୂଳର ଶାଗୁଣିଆ ଘାସ ଖାଇବାକୁ ଆସିଛି ।

ପୁଣି ଏତିକିବେଳେ କାଓ—କାଓ— କାଓ ରଡ଼ି ଶୁଣାଗଲା ।

ବାଇଆ କହିଲା — ଅଜା ! ଏ କ'ଣ ରଡ଼ି ?

ହନୁଅଜା କହିଲା —ଏ ହେଉଛି କୁଟୁରା ରଡ଼ି ।

ବାଇଆ କହିଲା—ସେ'ଟା ଲୋକଙ୍କୁ ମାରେ କି ନା ?

ହନୁଅଜା କହିଲା— ନା, ସେ ତମ ମିଲି ପରି । ତମ ମିଲି ଯାହା ଖାଏ, ଏ' ମଧ୍ୟ ତାହା ଖାଏ ।

ବାଇଆ କହିଲା—ଆମ ମିଲି ଘରେ କ'ଣ କରୁଥିବ ?

ହନୁଅଜା କହିଲା— ତୋତେ ନ ଦେଖି ତମ ମିଲି ମେଁ— ମେଁ — ରଡ଼ି ଛାଡ଼ୁଥିବ ।

ବାଇଆ କହିଲା—ଆମ ପଣ୍ଡୁ ?

ଆରେ, ତମ ପଣ୍ଡୁ ଭେଁ ଭେଁ କରୁଥିବ । ଆଉ କଥାବାର୍ତ୍ତା ହଅନା ଶୋଇପଡ଼ ।

ସୁନା ପଚାରିଲା—ସେଠୁ କ'ଣ ହେଲା ଗୁରୁଜୀ ?

ଗୁରୁଜୀ - ରାତିଅଧ ହେଲାବେଳକୁ ଝରଣା ସେ' ପାରି ହାଉଁ ହାଉଁ ରଡ଼ି ଶୁଣାଗଲା । ବାଇଆର ଛାଇଛାଇକିଆ ନିଦ ଚହିଉଁକିନା ଭାଙ୍ଗିଗଲା । ସେ ଶୋଇଥିବା ସ୍ଥାନର ପଥରଗୁଡ଼ାକ ଦୋହଲିଗଲା ପରି ଜଣାଗଲା ।

ବାଇଆ କହିଲା—ଅଜା ! ଅଜା ! ଏ କ'ଣ ରଡ଼ି ?



ହନୁଅଜା କହିଲା— ତୁନି ହୋ, ବାଘମାମୁଁ ।

ବାଇଆ କହିଲା— ସେ କ'ଣ ଏଠାକୁ ଆସିବ ?

ହନୁଅଜା କହିଲା— ହଁ, ତୋ' ବାସନା ପାଇଲେ ଟପ୍‌କିନା ନେଇଯିବ ।

ବାଇଆ କହିଲା— ତେବେ କ'ଣ କରିବା ଅଜା !

ହନୁଅଜା କହିଲା— ଚାଲ, ଗଛ ଉପରେ ଶୋଇବା ।

ବୁଝିଲୁ ସୁନା ! ହନୁ ବୁଢ଼ା ବାଇଆକୁ କାଖେଇ ଗୋଟାଏ ଗଛ ଉପରକୁ ନେଇଗଲା । ସେମାନେ ସେଠାରେ ରହିଲେ ।

ସୁନା ପଚାରିଲା—ଗୁରୁଜୀ ! ବାଇଆ କେମିତି ଗଛ ଉପରେ ଶୋଇଲା ?

ଗୁରୁଜୀ—ଗଛର ଗୋଟାଏ ବାହୁକୁ ବାଇଆ ଜାବୁଡ଼ି ଧରି ହନୁଅଜାର କୋଳରେ ଶୋଇଲା ।

ସୁନା—ସେଠୁ କ'ଣ ହେଲା ?

ଗୁରୁଜୀ—ସକାଳ ହେଲାବେଳକୁ ବଣକୁକୁଡ଼ା କକ୍‌ରେ କକ୍—କକ୍‌ରେ କକ୍ ଡାକିଲେ । ଚହଁକିନା ହନୁଅଜାର ନିଦ ଭାଙ୍ଗିଗଲା । ସେ ବାଇଆକୁ ହାତମାରି କହିଲା, ନାତି ! ଉଠ୍ ଉଠ୍, ସକାଳ ହେଲା । ତୋତେ "ପାଠପଣା" ଦେଇ ଦେବାକୁ ଏଠାରୁ ବାହାରିବା । ଏତିକିବେଳେ ଠେକୁଆ ମାଉସୀ ଖପ୍‌କରି ବୁଦାତଳରୁ ବାହାରିପଡ଼ିଲା ।

ହନୁ ଅଜା କହିଲା—ଭୁଲି ଗଲି ! ସବୁ ଠିକ୍ କଲୁ କି ନା ?

ଠେକୁଆ ମାଉସୀ ତା'ର ଲମ୍ବା ଲମ୍ବା କାନ ଦି'ଟାକୁ ଟୁଙ୍ଗାରି କହିଲା, ବୁଝିଲୁ ଅଜା ! ଆଜକୁ ଦୁଇଦିନ ହେଲା ପାହାଡ଼ଯାକ ବୁଲି ବୁଲି ସବୁ ଠିକ୍ କରି ଦେଇଛି ।

ହନୁଅଜା କହିଲା—କ'ଣ ଠିକ୍ କଲୁ ?

ଠେକୁଆ ମାଉସୀ କହିଲା—ଅଜା ! ଏ ଯୋଉ ପାହାଡ଼ଟା ଦିଶୁଛି ତାକୁ ଲାଗି ଆଉ ଗୋଟିଏ ପାହାଡ଼ ଅଛି । ସେହି ପାହାଡ଼ର ଉପରେ "ବୁଲିନାଶିନୀ କୁଣ୍ଡ" । ପାଖକୁପାଖ ଲାଗି ଦି'ଟା କୁଣ୍ଡ ଅଛି । ଗୋଟିକର ପାଣି ମିଠା, ଆଉ ଗୋଟିକର ପାଣି ପିଠା ।

ବୁଝିଲ ଅଜା ! ମୁଁ ଗୋଟାଏ ଚାରିହାତିଆ ବାଡ଼ି ଆଣି କୁଣ୍ଡରେ ପୂରାଇ ଦେଖିଲି ଯେ, ବାଡ଼ିଟି ଜମା ତଳକୁ ପାଇଲା ନାହିଁ । ଟପ୍‌କିନା ବୁଡ଼ିଗଲା ।

ହନୁଅଜା କହିଲା—ଭୁଲ ଲୋ ! ତୁ କିଛି ଜାଣୁନା । କୁଣ୍ଡକୁ କିଛି ବାଟ ପଡ଼ିବ । ପହିଲେ "ପାହାଡ଼ୀ ବୁଢ଼ୀ"ର ଘର ପଡ଼ିବ । ସେ ଗୋଟିଏ କୁଣ୍ଡରେ ଗାଧୁଏ ଓ ଗୋଟିଏ କୁଣ୍ଡର ପାଣି ପିଏ ।

ଠେକୁଆ ମାଉସୀ କହିଲା—ଆମେ ସେଠାକୁ ଯାଇ ପାରିବା ତ ?

ହନୁଅଜା କହିଲା—ନିଶ୍ଚୟ ଯିବା । "ପାହାଡ଼ୀ ବୁଢ଼ୀ" ଆମର କିଛି ଅନିଷ୍ଟ କରିବନି । ଆମେ ତା' ପାଖକୁ ଗଲେ ସେ ଭଲ ବାଟ ଆମକୁ ଦେଖାଇ ଦେବ । ସେ ବାଇଆର ଶୁଭ ମନାସିବ ।

ସୁନା – ସେଠୁ କ'ଣ ହେଲା ?

ଗୁରୁଜୀ କହିଲେ—ଏହି ସମୟରେ ପାହାଡ଼ ଉପରେ କ'ଣ ଗୋଟାଏ ଏଁ ଅ-ଏଁ ଅ-ଏଁ ଅ ଡାକ ଶୁଣାଗଲା ।

ବାଇଆ କହିଲା—ମାଉସୀ ! ସେ'ଟା କଣ ଡାକିଲା ?

ଠେକୁଆ ମାଉସୀ କହିଲା– ସେ'ଟା ମୟୂର ଡାକିଲା ।

ବାଇଆ କହିଲା—ସେ କ'ଣ କରେ ?

ଠେକୁଆ ମାଉସୀ କହିଲା– ସେ ସାପକୁ ଦେଖିଲେ ଗିଳି ପକାଏ ।

ବୁଝିଲୁ ବାଇଆ ! ସାପ ଗୋଟାଏ ଦୁଷ୍ଟ ଜୀବ । ଦୁଷ୍ଟ ପିଲା ସହିତ ସାଙ୍ଗ ହେବାରୁ ତୋ'ର ବୁଲାରୋଗ ହେଲା । ଏଣୁ ସାପକୁ ଆଉ ଦୁଷ୍ଟ ପିଲାକୁ ଦେଖିଲେ ତା' ପାଖକୁ ଜମା ଯିବୁନି ।

ଏତିକିବେଳେ ବୁଢ଼ାଶାଳଗଛ କୋରଡ଼ରେ ଥାଇ ପେଚାଟାଏ କେର୍ କେର୍—କେର୍ କେର୍—କେର୍ କେର୍ କରି ରାବିଦେଲା ।

ବାଇଆ କହିଲା—ମାଉସୀ ! ସେ'ଟା କ'ଣ ଗ୍ଲବଲା ?

ଠେକୁଆ ମାଉସୀ କହିଲା—ସେଗ୍ରଟାଏ ।

ବାଇଆ କହିଲା—ଭଲ ନା ଖଗ୍ରପ ।

ଠେକୁଆ ମାଉସୀ କହିଲା—      ସେଗ୍ର ଲୋ ସେଗ୍ର,
ଟେକର୍‌ଟେକର୍ କର ଛାଡ଼ ଯା ବସା ।

ସେଗ୍ର କହିଲା—କିଏ ଲୋ ତୁ ?

ଠେକୁଆ ମାଉସୀ କହିଲା—ବାଇଆ ମାଉସୀ କରେ ଥୁ ଥୁ ।

ସୁନା ପଗ୍ରରିଲା—ସେଠୁ କ'ଣ ହେଲା ?

ଗୁରୁଜୀ—ଏତିକିବେଳେ ବାଇଆ ଠାଏ କିନା ତାଳଟାଏ ମାରିଦେଲା ।

ସୁନା—ସେପଚା କୁଆଡ଼େ ଗଲା ?

ଗୁରୁଜୀ—ଭୁର୍ କିନା ଉଡ଼ିଗଲା ।

ସୁନା—ସେଠୁଁ କଣ ହେଲା ଗୁରୁଜୀ !

ଗୁରୁଜୀ—ଠେକୁଆ ମାଉସୀ କୁଦାମାରି ଆଗେ ଆଗେ ଚାଲିଲା । ତା' ପଛକୁ ହନୁ ଅଜା ଆଉ ବାଇଆ ଚାଲିଲେ ।

ଏତିକିବେଳେ ଟେଏଁ-ଟେଏଁ-ଟେଏଁ ଗ୍ଲବ ମୁଣ୍ଡ ଉପରେ ଶୁଣାଗଲା ।

ବାଇଆ କହିଲା—ଅଜା ! ମୋ ମୁଣ୍ଡ ଉପରେ କ'ଣ ଟେଏଁ-ଟେଏଁ କରୁଛି ?

ହନୁଅଜା କହିଲା—ଟୋ ମାଇଁ । ତା'ର ମୁହଁ ଚାହିଁଲେ ତୋର ଶୁଭ ହେବ ।

ଏତିକିବେଳେ ଟଲମାଇଁ ଖପ୍‌କରି ଆଗଗଛ ଡାଳରେ ବସି ଟେଏଁ-ଟେଏଁ କରି ଗୀତ ପଦେ ବୋଲିଦେଲା ।

ବାଇ ଭଣଜା ରେ ବାଇ ଭଣଜା,
ବରଡ଼ା ପତର ପେଁକାଳି ବଜା ।

ତିଆର କରଛି ମାମୁଁ ତୋହର
ବଜାଇ ମନକୁ ଆନନ୍ଦ କର ।

ଏହା କହି ଫଟ୍‌କନା ପେଁକାଳିଟାଏ ତଳକୁ ପକାଇଦେଲା ।

ସୁନା – ଗୁରୁଜୀ ! ଚଲ ମାଇଁ ପୁଣି କୁଆଡ଼େ ଗଲା ?

ଗୁରୁଜୀ— ତା' ବସା ଆଡ଼କୁ ଉଡ଼ିଗଲା ।

ବୁଝିଲୁ ସୁନା ! ବାଇଆ ଯେମିତି ପେଁକାଳିଟା ଦେଖିଲା, ଚଟ୍‌କନା ତଳୁ ଗୋଟାଇ ତୁଣ୍ଡରେ ପୂରାଇ ପେଁ-ପେଁ କରି ବଜାଇଦେଲା । ସେଠାରୁ ସମସ୍ତେ ଚାଲିଲେ । ଆଗରେ ଠେକୁଆ ମାଉସୀ, ତା ପଛକୁ ବାଇଆ ପୁଣି ତା' ପଛରେ ହନୁଅଜା । ଜଙ୍ଗଲ ରାସ୍ତା । ଯାହିଁ ଚାହିଁବ ଗଛ ଲତା ମୁଣ୍ଡ ଟେକିଛନ୍ତି । ଗଛଲତା ବାଇଆକୁ ଦେଖି ଗୀତ ବୋଲିଲେ ।

ଏଇଟି ଆମର ବାଇ ରେ
ପାଠପଣା ପିଇ ଯାଏ ରେ ।

ତା' ମା' କାନ୍ଦେ କେତ କେତ,
କୁହ ଝିର ଗାଲ ଯାଏ ତନ୍ତ ।

ବାଇଆ କହିଲା— ଅଜା ! ମୋ' ମା ?

ହନୁଅଜା କହିଲା—ତୋ' ମା' ତମ ଘରେ ଥିବେ ।

ବାଇଆ ପୁଣି ଚାଲିଲା । ବାଁ କଡ଼ର ଶୁଖିଲା କାଠ କୋରଡ଼ରେ ଥାଇ କାଠବେଙ୍ଗଟାଏ ଟର୍-ଟର୍ କରି ରଡ଼ିଦେଲା । ତା'ପରେ ଗୀତ ପଦେ ବୋଲି ଦେଲା —

ଏଇଟି ଆମର ବାଇ ରେ,
ପାଠପଣା ପିଇ ଯାଏ ରେ,

ବାପା ଆଖି ଲୁହ ଝରଝର,
ନ ଖାଇ ନ ପିଇ ଥରଥର ।

ବାଇଆ ପଚାରିଲା—ଅଜା ! ମୋ ବାପା ?

ହନୁଅଜା କହିଲା— ତୋ ବାପା ତମ ଘରେ ଥିବେ । ତୋ' ବାପା ତୋ' ପାଇଁ ଝୁରି ଝୁରି ଦେହଟା ତାଙ୍କ କଣ୍ଟା ହୋଇ ଯାଇଥିବଣି ।

ସୁନା ପଚାରିଲା—ସେଠୁ କଣ ହେଲା ଗୁରୁଜୀ !

ଗୁରୁଜୀ—ଖଣ୍ଡେ ଦୂର ଗଲାପରେ ଗହଳିଆ ଜଙ୍ଗଲ ପଡ଼ିଲା । ଏଣେ ବରଷା ଟପଟପ ହୋଇ ପଡ଼ିଲା । ଡାହାଣ ପାଖରେ ଝରଣାଟାଏ ବୁକୁରେ ବହିଯାଉଥିଲା । ମେଘ ଅନ୍ଧାର ଯୋଗୁଁ ଗହଳିଆ ଜଙ୍ଗଲ ଭିତରେ ସମସ୍ତଙ୍କୁ ଛାନିଆ ମାଡ଼ିଲା ।

ଏତିକିବେଳେ ହନୁଅଜା ବାଇଆକୁ କହିଲା—ଆରେ ନାତି ! ତୋ' ପେଁକାଳିଟା ବଜାଉନୁ । ଏହା ଶୁଣି ବାଇଆ ପେଁକାଳିଟା ପେଁ-ପେଁ କରି ବଜାଇ ଦେଲା ।

ସୁନା – ସେଠୁ କ'ଣ ହେଲା ?

ଗୁରୁଜୀ— ପେଁକାଳର ପେଁ ପେଁ ଶବ୍ଦ ଶୁଣି ଗୋଟାଏ ଦନ୍ତାହାତୀ ପେଁ କରି ସେମାନଙ୍କ ଆଡ଼କୁ ଗୋଡ଼ାଇ ଆସିଲା ।



ହନୁଅଜା ବଡ଼ ଚତୁର ଥିଲା । ସେ ତା' ବାଁ ହାତରେ ବାଇଆକୁ ଖପ୍‌କିନା କାଖେଇ ଗୋଟିଏ ଗଛକୁ ସଟ୍‌ସଟ୍ କରି ଚଢ଼ିଗଲା ।

ଗଛଟା ଝଙ୍କାଳିଆ ଥିଲା । ଠେକୁଆ ମାଉସୀ ବୁଦାତଳେ ଝପ୍‌କିନା ବସିପଡ଼ିଲା ।

ସୁନା – ଗୁରୁଜୀ ! ଦନ୍ତାହାତୀଟା କୁଆଡ଼େ ଗଲା ?

ଗୁରୁଜୀ—ଦନ୍ତା କାହାକୁ ନ ଦେଖି ଲେଉଟିଗଲା ।

ଦନ୍ତାଟା ଚାଲିଯିବାରୁ ହନୁଅଜା ବାଇଆକୁ ଧରି ଗଛରୁ ତଳକୁ ଓହ୍ଲାଇଲା ।

ବାଇଆ ପଚାରିଲା—ଅଜା ! ସେ'ଟା କିଏ ପେଁ କରି ପେଁକାଳିଟା ବଜାଇ ଦେଲା ?

ହନୁଅଜା କହିଲା—ସେ'ଟା ପରା ଜଙ୍ଗଲ ରାଜା । ପିଲା ଦେଖିଲେ ଥୋଡ଼ରେ ଧରି ବୁଲାଇ ଦିଏ । ବୁଲାଇ ସାରି ଗଛରେ ପିଟିଦିଏ ।

ବାଇଆ କହିଲା—ଅଜା, ସେ ପେଁକାଳିଟା କୋଉଠୁ ପାଇଲା ଯେ ପେଁ କଲା ।

ହନୁଅଜା କହିଲା—ସେ ପେଁ କରି ରଡ଼ିଦେଲା ।

ତୋ' ପେଁକାଳିର ପେଁ-ପେଁ ଶୁଣି ତା' ସାଙ୍ଗସାଥୀ ଅଛନ୍ତି ବୋଲି, ଆମ ଆଡ଼କୁ ଧାଇଁ ଆସୁଥିଲା ।

ବାଇଆ କହିଲା—ଅଜା ! ମୁଁ ବଣର ରାଜାକୁ ଦେଖି ପାରିଲିନି ।

ହନୁଅଜା କହିଲା—ଆରେ ତୋତେ ଯେତେବେଳେ ତୋ' ଜେଜେ ବାପାଙ୍କୁ ଦେଖାଇ ନେବି ତୁ ସେଠାରେ ବଣର ରାଜାଙ୍କୁ ଦେଖି ପାରିବୁ ।

ବାଇଆ କହିଲା—କୋଉଠିକି ?

ହନୁଅଜା କହିଲା, "ଶିମୁଳିପାଳ ପାହାଡ଼କୁ । ଶୁଣ, ତୁ ସେଠାରେ ଅନେକ ଜୀବଜନ୍ତୁଙ୍କୁ ଦେଖି ପାରିବୁ । ତୋ' ଜେଜେ ବାପା ପରା ସେଠାରେ ଅଛନ୍ତି ।

ବାଇଆ ପଚାରିଲା—କେତେ ବର୍ଷ ହେଲାଣି ?

ହନୁଅଜା କହିଲା—ଆଜିକୁ ତିନି ବର୍ଷ ହେଲାଣି ।

ବାଇଆ କହିଲା – ଜୀବଜନ୍ତୁମାନଙ୍କୁ ସେଠାରେ କିଏ ରଖିଛି ?

ହନୁଅଜା କହିଲା—ଆମ ରାଜ୍ୟ ସରକାର ରଖିଛନ୍ତି ।

ଏତିକିବେଳେ ଠେକୁଆ ମାଉସୀ କହିଲା – ଚାଲ ଚାଲ ବେଳଟା ମୁଣ୍ଡଉପରେ ହେଲା । ପୁଣି ସେମାନେ ସେଠାରୁ ଚାଲିଲେ ।

ସୁନା—ସେଠୁ କ'ଣ ହେଲା ଗୁରୁଜୀ !

ଗୁରୁଜୀ—କେତେ ବଣ ଜଙ୍ଗଲ, କେତେ ଝରଣା ପାରହୋଇ ବୁଲାନାଶିନୀ କୁଣ୍ଡ ପାଖାପାଖି ହେଲେ । ସେଠାରୁ ଗୋଟାଏ ବାଟ 'ପାହାଡ଼ୀ ବୁଢ଼ୀ' ପାଖକୁ ପଡ଼ୁଛି ।

ସେମାନେ ସେହି ବାଟରେ ଗଲେ । ଯାଉ ଯାଉ ଦେଖିଲେ ବାଟରେ ଗୋଟାଏ ବୁଢ଼ୀ ବସିଛି । ମୁଣ୍ଡରେ ଓଢ଼ଣା ଦେଇଛି । ଚମ ଧୁଡୁଧୁଡୁ । ବୟସ ଶହେ ଉପରେ । ବାଇଆ ବୁଢ଼ୀକୁ ଟିକିଏ ଦୂରରୁ ଦେଖି ହନୁ ଅଜାକୁ ପଚାରିଲା, "ଅଜା ଏ କିଏ ?

ହନୁଅଜା କହିଲା—ଏ ବୁଢ଼ୀର ନାମ "ପାହାଡ଼ୀ ବୁଢ଼ୀ" । କାରଣ ଏ ବୁଢ଼ୀ ପାହାଡ଼ରେ ରହୁଥିବାରୁ ଲୋକେ "ପାହାଡ଼ୀ ବୁଢ଼ୀ" ବୋଲି ଡାକନ୍ତି ।

ବାଇଆ କହିଲା—ଅଜା ! ତାକୁ କ'ଣ ଏକୁଟିଆ ଏଠାରେ ରହିବାକୁ ଭଲ ଲାଗୁଛି । କିଛି ଡର ମାଡୁନି ।

ହନୁଅଜା କହିଲା—ନା, ତାକୁ ଏ ପାହାଡ଼ ପାଖ ଝରଣାକୂଳ ଭଲ ଲାଗେ । ଝରଣା କୂଳରେ କେତେ ଫୁଲ ଫୁଟୁଛି । କେତେ ପୁଣି ଫୁଟି ଝଡ଼ି ପଡୁଛି । ସୁଲୁସୁଲିଆ ପବନ ବହୁଛି ।

ଫୁଲମାନଙ୍କର ମହକ ପବନରେ ଛୁଟୁଛି । ଏହି ଜାଗା ଦେହପାଇଁ ସବୁଠୁଁ ଭଲ ।

ବାଇଆ ପଚାରିଲା—ଅଜା ! ସେ କ'ଣ ଖାଏ ?

ହନୁଅଜା କହିଲା – ଏ ବୁଢ଼ୀ ପାହାଡ଼ର ପାଚିଲା ଫଳ ଖାଏ, ଶୋଷକଲେ ଝରଣାର ପାଣି ପିଏ ।

ବାଇଆ କହିଲା—ଫଳଖାଇ କମିତ ବଞ୍ଚୁଛି ?

ହନୁଅଜା କହିଲା—ହଁ, ତୁ ଯେପରି ଘରେ ଶାଗ, ଭାତ ଖାଉ, ସେ ସେପରି
ଫଳ ଖାଇ ବଞ୍ଚିଛି ।
ପାଚିଲା ଫଳରେ, ଭାତ, ଶାଗଠାରୁ ଆହୁରି ସାର ଅଛି । ଫଳ ଖାଉଥିବା
ଲୋକର ଦେହ ସତେଜ ରହେ । ତା' ଦେହରେ ରୋଗ-ବାଗ
ହୁଏନି । ସେ ବେଶିଦିନ ବଞ୍ଚି ରହେ । ଏଥିପାଇଁ ଏ ବୁଢ଼ୀ ବହୁତ
ବରଷ ବଞ୍ଚିଲାଣି ।

ବାଇଆ କହିଲା—ଅଜା ! ତୁ ତେବେ ମୋତେ ପାଚିଲାଫଳ ବହୁତ ଖାଇବାକୁ
ଦେବୁ ।

ହନୁଅଜା କହିଲା—ହଁ, ଏ ଜଙ୍ଗଲରେ ବହୁତ ପ୍ରକାର ପାଚିଲା ଫଳ ମିଳେ ।

ବାଇଆ କହିଲା—ସବୁଦିନେ କ'ଣ ପାଚିଲା ଫଳ ଖାଇବାକୁ ମିଳିପାରିବ ?

ହନୁଅଜା କହିଲା—ବୁଝିଲୁ ନାତି ! ବଡ଼ ହେଲେ ତମ ବାଡ଼ିରେ ଫଳଗଛ
ଲଗାଇବୁ ହେଲେ ପାଚିଲାଫଳ ପାଇ ପାରିବୁ ।

ହନୁଅଜା କହିଲା—ଆରେ ବାଇଆ ! 'ପାହାଡ଼ୀ ବୁଢ଼ୀ'ର ପାଖକୁ ଗଲେ ଆମେ
ଦୁହେଁ ମୁଣ୍ଡ ନୁଆଁଇ ଜୁହାର କରିବା । ସେ ବୁଢ଼ୀ ଆମର ଗୁରୁଜନ ।
ତୋର ପୁଣି ଆଇ ଲାଗିବେ ।

ବାଇଆ କହିଲା—ଅଜା, ଆଇଙ୍କୁ ଜୁହାର କଲେ କ'ଣ ଫଳ ମିଳେ ?

ହନୁଅଜା କହିଲା—ଆରେ ଯେଉଁମାନେ ଆମଠାରୁ ବୟସରେ ବଡ଼
ସେମାନଙ୍କୁ ଗୁରୁଜନ କହନ୍ତି । ଘରେ ବାପା, ମା, କକା, କାକୀ, ଅଜା,
ଆଇ ଆମର ଗୁରୁଜନ । ସେମାନେ ଛୋଟମାନଙ୍କର ସବୁବେଳେ ଶୁଭ
ମନାସନ୍ତି ।

ବାଇଆ କହିଲା—ହଁ, ଅଜା ! ଏଥର ଗୁରୁଜନମାନଙ୍କୁ ଦେଖିଲେ ମୁଣ୍ଡ
ନୁଆଁଇବି ।

ସୁନା—ଗୁରୁଜୀ ! ସେଠୁ କ'ଣ ହେଲା ?

ଗୁରୁଜୀ—ହନୁଅଜା ଓ ବାଇଆ ଦୁହେଁ ବୁଢ଼ୀ ପାଖକୁ ଯାଇ ଓଳଗି ହେଲେ ।



ବୁଢ଼ୀ କହିଲା—ଆରେ ବାଇ ନାତି ! ତୋ ଦେହଟା କାହିଁକି ଏତେ ଅସନା ହୋଇଛି । ପୁଣି ଦେହରେ କାଛୁ, କୁଣ୍ଡିଆ ଜାଗା ଛାଡ଼ିନି ।

ହନୁଅଜା କହିଲା—ବୁଝିଲୁ ଖୁଡ଼ୀ ! ବାଇଆ ପାଠପଢ଼ି ଯାଏନି । ଘରେ ଅଝଟ ହୁଏ । ଶୀତ, ଖରା, ବରଷା ମାନେ ନି । କାଦୁଅ ପାଣିରେ ବେଙ୍ଗୁଲି ଧରେ । ଗଛରେ ଚଢ଼ି ଗୁଣ୍ଡୁଚିମୂଷାକୁ ମାରେ । ଚଗଲା ପିଲାଙ୍କ ସହିତ ସାଙ୍ଗ ହୁଏ । ଠିକ୍ ସମୟରେ ଗାଧୁଆ ପାଧୁଆ କରେନି କି ଖାଏନି ।

ବୁଢ଼ୀ କହିଲା—ବୁଝିଲୁ ପୁଅ ! ମୋ' କଥା ଦି' ପଦ ଶୁଣ—

ଯେଉଁ ପିଲା ପର ଜିନଷ ଚୋରି କରେ, ଦୁଷ୍ଟାମି କରେ, ଗୁରୁଜନଙ୍କୁ ମୁଣ୍ଡ ନୁଆଁଏନ, ସାଙ୍ଗସାଥୀଙ୍କୁ ଭଲ ପାଏନ ; ତାକୁ ମୁଁ ଭଲ ପାଏନ୍ନ ।

ହନୁଅଜା କହିଲା—ଖୁଡ଼ୀ ! ବାଇ ପିଲାଲୋକ, କିଛି ଜାଣିନ । ତା'ର ଶୁଭ ମନାସ । 'ପାଠପଣା' ଯୋଉଠି ମିଳିବ, ସେହି ବାଟ ବତାଇଦିଅ ।

ପାହାଡ଼ୀ ବୁଢ଼ୀ କହିଲା—ବୁଲନାଶିନୀ' କୁଣ୍ଡର ପାଣି 'ପାଠପଣା'ଠୁଁ ମଧୁର । ସେହି ପାଣି ପିଇଲେ ମନ ଆନନ୍ଦ ଲାଗିବ । ଦେହରେ ରୋଗ-ବାଗ ହେବନି ।

ସୁନା—ଗୁରୁଜୀ ! ହନୁଅଜା ଓ ବାଇଆ ପିଲା କୁଆଡ଼େ ଗଲେ ?

ଗୁରୁଜୀ—ବୁଝିଲୁ ସୁନା ! ପାହାଡ଼ୀ ବୁଢ଼ୀ ସେମାନଙ୍କୁ ଭଲ ବାଟଟିଏ ଦେଖାଇ ଦେଲା । ଆଉ ଦିପଦ କଥା ହନୁଅଜାକୁ କହିଲା—ବୁଝିଲୁ ପୁଅ । ଆଉ ଅଳପ ବାଟ ଗଲେ ସେହି ପାହାଡ଼ ପାଖ ତଳରେ 'ବୁଲନାଶିନୀ' କୁଣ୍ଡ । ସେହି କୁଣ୍ଡର ପାଣି ନିରମଳ । ବଳୁଆନନା ସେଠାରେ ଦିନରାତ ଜଗିଛନ୍ତି । କାଦୁଅ ପାଣି ଗୋଳିଆ ଆଉ ଅଇଁଠା କରିଦେବ । ତୁ ସେଠାକୁ ବାଇକୁ ନେଲେ ବଳୁଆନନା ଔଷଧ ଦେଇ ଭଲ କରିଦେବ । ତା ଦେହରେ ଜମା କାଛୁ, କୁଣ୍ଡିଆ ରହିବନି । ବାଇର ଦେହ ତାଜା ହୋଇଯିବ ଓ ମନ ବଦଳିଯିବ ।

ସୁନା—ଗୁରୁଜୀ ! ଅନ୍ୟର ଅଇଁଠା ଖାଇବା କ'ଣ ଖରାପ ଅଟେ କି ?

ଗୁରୁଜୀ—ହଁ—ଖରାପ ଅଟେ । କା' ଦେହରେ କି ବେମାରି ଅଛି କିଏ ଅବା ଜାଣେ । ଅଇଁଠା ଖାଇଲେ ବେମାରି ତେଇଁ ଆସିପାରେ ।

ସୁନା—ଗୁରୁଜୀ ତା'ପରେ କ'ଣ ହେଲା ?

ଗୁରୁଜୀ—ପାହାଡ଼ୀ ବୁଢ଼ୀ କଥାରେ ସେମାନେ ସେହି ବାଟରେ ଚାଲିଲେ । ସେମାନେ ଯାଉ ଯାଉ ବାଟରେ ଅନେକ ରକମର ପାଚିଲାଫଳ କୁଢ଼ କୁଢ଼ ହୋଇ ପଡ଼ିଥାଏ । ବାଇଆ ବାଟ ଚାଲି ଚାଲି ତାକୁ ଲୋଭ କଲାଣି ।

ବୁଝିଲୁ ସୁନା ! ସେହି ଜାଗାରେ କେତେ ମିଠା ଫଳ ଆଉ ଆମ୍ବିଳା ଫଳ ପଡ଼ିଥାଏ । ସେ ଭୋକଦାଉରେ ଗୋଟିଏ ଫଳ ପାଟିରେ ପୂରାଇ ଦାନ୍ତରେ କାମୁଡ଼ି ଦେବାମାତ୍ରେ ଦାନ୍ତଗୁଡ଼ାକ ଆମ୍ବିଳାରେ କଠାଇ ଗଲା । ପାଟି ଆମ୍ବିଳା ହେବାରୁ ସେ ଥୁ ଥୁ କଲା । ଏତିକିବେଳେ ହନୁଅଜା କର୍ କର୍ ହୋଇ ହସିଲା ।

ସୁନା—ଗୁରୁଜୀ ! ହନୁଅଜା କାହିଁକି ହସିଲା ?

ଗୁରୁଜୀ—ବାଇଆ ମୂରୁଖ ପିଲା ବୋଲି । ମୂରୁଖ ପିଲାର ବୁଦ୍ଧି ନ ଥାଏ । ପାଠୁଆ ପିଲା ବୁଝିସୁଝି କାମ କରେ ଓ ଭଲ ମନ୍ଦ ଜାଣିପାରେ । କେଉଁ ଫଳ ମିଠା ଆଉ କେଉଁ ଫଳ ଖଟା ହନୁଅଜାଠୁ ବୁଝିଥିଲେ ଭଲ ହୋଇଥାନ୍ତା ।

ସୁନା—ଗୁରୁଜୀ ! ସେଠୁ କଣ ହେଲା ?

ଗୁରୁଜୀ—ହନୁଅଜା ଆଉଥରେ କର୍ କର୍ ହୋଇ ହସି ଗୀତ ପଦେ ବୋଲି ଦେଲା ।

ପାଠ ପଢ଼ିଥିଲେ ଏମିତି ମଜା,
ମନ କଲେ ସେହି ଖାଇବ ଖଜା,
ବାଇଆ ପାଠ,
ଅଳପ ଦିନରେ ଫସର ଫାଟ ।

ଏହି ସମୟରେ ଠେକୁଆ ମାଉସୀ ହଠାତ୍ ଆଗକୁ କୁଦାମାରି ସେ ମଧ୍ୟ ଗୀତ ପଦେ ବୋଲିଦେଲା ।

ଫଳ ଖାଇବାରେ ପିତା କି କଷା,
ବାଇଆ ହେଲା ଲୋକର ହସା ।

ବାଇଆ କହିଲା—ମାଉସୀ ! ମୁଁ ଘରକୁ ଗଲେ କୁଆଡ଼େ ଆଉ ବୁଲାବୁଲି କରିବିନି । ପାଠପଢ଼ାରେ ମନଦେବି ।

ସୁନା—ସେଠୁ କ'ଣ ହେଲା ଗୁରୁଜୀ !

ଗୁରୁଜୀ—ହନୁଅଜା ବାଇଆକୁ ବାଛିବାଛି ମିଠାଫଳ ଗୋଟାଇ ଖାଇବାକୁ ଦେଲା । ତା'ପରେ ସେଠାରୁ ଚାଲିଲେ ।

ଦିନ ବାରଟାବେଳକୁ ସେମାନେ ସେହି 'ଶୁଳନାଶିନୀ' କୁଣ୍ଡ ପାଖରେ ପହଞ୍ଚିଲେ । ସେହି କୁଣ୍ଡ ପାଖରେ ବଲ୍ଲୁଆନନା ଅପେକ୍ଷାରେ ଥିଲା । ବଲ୍ଲୁଆନନା ହନୁଅଜାଙ୍କୁ ମୁଣ୍ଡ ନୁଆଁଇ ଓଳଗି ହେଲା । ବାଇଆର 'ପାହାଡ଼ୀ ବୁଢ଼ୀ' କଥା ମନେ ପଡ଼ିବାରୁ ସେ ମଧ୍ୟ ବଲ୍ଲୁଆନନାକୁ ମୁଣ୍ଡ ନୁଆଁଇଲା ।

ବଲ୍ଲୁଆନନା କହିଲା— ତମେ ଏଠାରେ ସାତ, ଆଠଦିନ ରହ । ବଣର ଫଳମୂଳ ଖାଅ । ବଡ଼ କୁଣ୍ଡର ପାଣି ପିଆପିଇ କର । ସାନ କୁଣ୍ଡର ପାଣିରେ ଗାଧୁଆପାଧୁଆ କର ।

ସୁନା ପଚାରିଲା— ଗୁରୁଜୀ ! ସେଠୁ କ'ଣ ହେଲା ?

ଗୁରୁଜୀ— ହନୁଅଜା, ଠେକୁଆ ମାଉସୀ, ବାଇଆ ସେଠାରେ ସାତଦିନ ରହିଲେ । ବଲ୍ଲୁଆନନା ନିଜ ହାତରେ ବାଇଆର କାଛୁକୁଣ୍ଡିଆକୁ ପାଣିରେ ଧୋଇଦେଇ ସଫା କରିଦେଲା । ହନୁଅଜା ପାଚିଲା ଫଳ ଆଣି ଖାଇବାକୁ ଦେଲା ।

ବାଇଆର ଦେହ ବଦଳିଗଲା । ତା' ଦେହରେ ଜମା କାଛୁକୁଣ୍ଡିଆ ରହିଲାନି । ସେମାନେ ବଲ୍ଲୁଆନନାଠାରୁ ମେଲଣି ମାଗି ପୁଣି 'ଶିମୁଳିପାଳ' ଜଙ୍ଗଲ ଆଡ଼କୁ ଚାଲିଲେ । ସେମାନେ ପାଞ୍ଚଦିନ ପରେ 'ଶିମୁଳିପାଳ' ଜଙ୍ଗଲରେ ପହଞ୍ଚିଲେ । ସେତେବେଳକୁ ସଞ୍ଜ ମାଡ଼ି ଆସୁଥାଏ । ଯୋଉଠି ବଣର ଜୀବଜନ୍ତୁ ଜଙ୍ଗଲ ଭିତରେ ଅଛନ୍ତି, ସେମାନେ ସେଠାରେ ପହଞ୍ଚିଲେ ।

ସୁନା— ଗୁରୁଜୀ ! ହନୁଅଜା କ'ଣ କଲା ?

ଗୁରୁଜୀ— ହନୁଅଜା ଅଙ୍ଗୁଳି ଦେଖାଇ ତା ପାଖକୁ ବାଇଆକୁ ଦେଖାଇ ଦେଲା । ତା'ପରେ ଗୋଟାକ ପରେ ଗୋଟାଏ ଜନ୍ତୁମାନଙ୍କୁ ବାଇଆକୁ ଅଙ୍ଗୁଳି ଦେଖାଇ ଚିହ୍ନାଇ ଦେଲା ।

ବାଇଆ କହିଲା – ଅଜା ! ଏଠାରେ କି କି ଜୀବଜନ୍ତୁ ଅଛନ୍ତି ?

ହନୁଅଜା କହିଲା— ଏଠାରେ ହାତୀ, ବାଘ, ହରିଣ, କୁଟୁରି, ଠେକୁଆ, ବାରହା, ଗୟଳ, ମାଙ୍କଡ଼ ଓ ହନୁ ଇତ୍ୟାଦି ।

ପୁଣି ହନୁଅଜା କହିଲ—ନାତ ! ତୁ ସେ ପାଖକୁ ଗଲେ ବିଭିନ୍ନ ପକ୍ଷୀ ମଧ୍ଯ ଦେଖି ପାରିବୁ ।

ବାଇଆ କହିଲ—କି କି, ପକ୍ଷୀ ?

ହନୁଅଜା କହିଲ—ମୟୂର, ପାରା, କପୋତ, ଶୁଆ, ସାରୀ, କୋଇଲି ଇତ୍ୟାଦି ।

ବାଇଆ କହିଲ—ଅଜା ! ଏମାନେ ଏଠାରେ କାହିଁକି ଅଛନ୍ତି ?

ହନୁଅଜା କହିଲ—ଏମାନେ ଏଠାରେ ଜଗିପଦରେ ଅଛନ୍ତି ? ଆମ ରାଜ୍ୟ ବିଭିନ୍ନ ସହର ଆଉ ଗାଁରୁ ଲୋକମାନେ ଏଠାକୁ ଦେଖିବାକୁ ଆସନ୍ତି ।

ସୁନା—ସେଠୁ କ'ଣ ହେଲା ?

ଗୁରୁଜୀ—ସଞ୍ଜ ଘନେଇ ଆସିଲା । ଠେକୁଆ ମାଉସୀ ହନୁଅଜାକୁ କହିଲା, "ଏଠାରେ ରହି ଆମର ଲାଭ କ'ଣ ?"

ବାଇଆ ତ ସବୁ ଜଙ୍ଗଲର ପଶୁପକ୍ଷୀଙ୍କୁ ଦେଖି ସାରିଲା । ମୁଁ ତୁମଙ୍କୁ ଆଉ ଗୋଟାଏ ଜାଗାକୁ ନେବି । ଏହି ଜଙ୍ଗଲ ତଳେ ସେହି ଗାଁ ।

ବାଇଆ କହିଲା—କି ଗାଁ ?

ଠେକୁଆ ମାଉସୀ କହିଲା—କନ୍ଧ କଲୋନୀ ।

ବାଇଆ କହିଲ—ସେଠାରେ କିଏ ଅଛନ୍ତି ?

ଠେକୁଆ ମାଉସୀ କହିଲା, "ଆଦିବାସୀ ଲୋକମାନେ । ସରକାର ସେମାନଙ୍କ ପାଇଁ ଘର ତୋଳାଇ ଦେଇଛନ୍ତି ।

ବାଇଆ କହିଲା – କାହିଁକି ?

ଠେକୁଆ ମାଉସୀ କହିଲ—ସେମାନେ ଜଙ୍ଗଲ ପୋଡ଼ି, ଚାଷ କରୁଥିଲେ । ଏହାକୁ "ପୋଡୁଚାଷ" କହନ୍ତି । ଜଙ୍ଗଲ ପୋଡ଼ିବାଦ୍ୱାରା ଅନେକ ମୂଲ୍ୟବାନ୍ ଗଛ ପୋଡ଼ିଯାଇ ନଷ୍ଟ ହୋଇ ଯାଉଥିଲା । ଏଥିପାଇଁ ଆମ ସରକାର ସେମାନଙ୍କର ଯାବତୀୟ ସୁବିଧା କରିଦେଇଛନ୍ତି ।

ହନୁଅଜା କହିଲ—ଚାଲ ତେବେ ସେଠାକୁ ଯିବା ।

ଆଜି ସେ ଗାଁରେ ରାତଟା କଟାଇଦେବା । ଏହା କହି ସେମାନେ ସେହି ଗାଁ ଆଡ଼କୁ ଗଲେ । ସଞ୍ଜ ହୋଇ ସାରିଛି । ସେମାନେ ସେହି ଗାଁ ମୁଣ୍ଡରେ ପହଞ୍ଚିଲେ । ଦେଖିଲେ ଗୋଟିଏ ପଢ଼ାଘର ଅଛି ।

ବାଇଆ କହିଲା—ଅଜା ! ଏଇଟା କି ଘର ?

ହନୁଅଜା କହିଲା—ଏହା ବୁଢ଼ାମାନଙ୍କ ପଢ଼ାଘର ।



ସେମାନେ ସେହି ଆଲୁଅ ଜଳୁଥିବା ପଢ଼ାଘରକୁ ଗଲେ ।

ସୁନା—ଗୁରୁଜୀ ! ସେମାନେ ସେଠାରେ କ'ଣ ଦେଖିଲେ ?

ଗୁରୁଜୀ— ସେ ଘରେ ଗୋଟାଏ ଲଣ୍ଠନ ଜଳୁଛି । ବୁଢ଼ାମାନଙ୍କୁ କେହି ଜଣେ ପାଠ ପଢ଼ାଉଛି । ବୁଢ଼ାମାନେ ନିଜ ନିଜର ବହି ଖୋଲି ପାଠ ପଢ଼ିବାରେ ଧିଆନ ଦେଇଅଛନ୍ତି । ସେ ସ୍ଥାନଖଣ୍ଡିକ ଚହଳ ପଡ଼ିଯାଉଅଛି ।

ଠେକୁଆ ମାଉସୀ କହିଲି— ବାଇ ରେ ! ସେଠାକୁ ଯାଇ ଟିକିଏ ଦେଖିଆସ ।

ସୁନା— ଗୁରୁଜୀ ! ବାଇଆ ସେଠାକୁ ଗଲା କି ନା ?

ଗୁରୁଜୀ— ବାଇଆକୁ ଲାଜ ମାଡ଼ିଲା । ହନୁଅଜା ତା' ବାଁହାତ ଧରି ତାକୁ ଟାଣି ନେଇ ବୁଢ଼ାମାନଙ୍କ ପଢ଼ା ଦେଖାଇଦେଲା ।

ବାଇଆ ହନୁଅଜାକୁ କହିଲା— ଅଜା ! ଏଣିକି ଘରକୁ ଯିବା । ମୁଁ ଇସ୍କୁଲକୁ ପାଠ ପଢ଼ିବାକୁ ଯିବି । ଏହି ଗାଁର ବୁଢ଼ାମାନେ ପାଠ ପଢ଼ୁଛନ୍ତି, ମୁଁ କାହିଁକି ପାଠ ପଢ଼ିବିନି ।

ହନୁଅଜା କହିଲା— ତୋ' କଥା ହେଉ । ରାତି ପାହିଲେ ଏଠାରୁ ବାହାରିବା ।

ସୁନା— ସେଠୁ କ'ଣ ହେଲା ?

ଗୁରୁଜୀ— ରାତି ପାହିଲା । କନ୍ଧ କଲୋନୀର କୁକୁଡ଼ା କକ୍‌ରେ କକ୍, କକ୍‌ରେ କକ୍ ଡାକିଲେ । ସେମାନେ ବାଇଆର ଗାଁ ଆଡ଼କୁ ଚାଲିଲେ । ସାତଦିନ ପରେ ତା'ଙ୍କ ଗାଁ'ରେ ପହଞ୍ଚିଲେ । ସେହି ଗାଁ ଜଙ୍ଗଲପାଖ 'ପାଞ୍ଚଗଛିଆ' ତାଳବଣ । ଚଳ ମାଈ ତାଳଗଛରେ ଥାଇ ଚେଁ-ଚେଁ କରୁଥିଲା । ବାଇଆ ତା' ବସାରେ ଥାଇ ସିଇ-ଇ-ସିପ୍— ସିଇ-ଇ-ସିପ୍ କରୁଥିଲା । ବାଇ ଚଢ଼େଇ ବାଇଆକୁ ଦେଖି ଗୀତ ବୋଲିଦେଲା ।

ବାଇଆ ମିତ ହେ ! ବାଇଆ ମିତ,
ଆସ ହେ ! ବସାକୁ ଗାଇବା ଗୀତ ।

ଚଳ ମାଈ କହିଲା— ବାଇ ଭଣଜା ରେ ବାଇ ଭଣଜା,
ପେଁକାଳି ବଜାଇ ପାଇଲି ମଜା,
ପାଠ ତୁ ପଢ଼,
ହୁଅ ତୁ ବଡ଼ ।

ପୁଣି ବାଇ ଚଢ଼େଇ କହିଲା—ମିତ ! ତୁମେ ତ 'ପାଠପଣା' ପିଇ ଆସିଲ, ଆସ ଆସ ଗୀତ ବୋଲିବା ।

ବାଇଆ କହିଲା – କି ଗୀତ ?

ବାଇ ଚଢେଇ କହିଲା – ପାଠଗୀତ ।

ବାଇଆ କହିଲା—ମୁଁ ପାଠ ପଢି ଇସ୍କୁଲରୁ ଫେରିଲେ ଏଠାକୁ ଆସିବ, ଦୁହେଁଯାକ ଗୀତ ବୋଲିବା ।

ବାଇ ଚଢ଼େଇ କହିଲା—ମିତ ! ତମ କଥା ହେଲା ।

ସେ ଦିନ ସେମାନେ ଗାଁ-ମୁଣ୍ଡରେ ପହଞ୍ଚିଲାବେଳକୁ ସମୟ ଆଠଟା । ମିଲି ଆଉ ପଣ୍ଡୁ ଗାଁ ମୁଣ୍ଡରେ ଥିଲେ । ବାଇଆକୁ ଭେଟିଲେ । ବାଇଆ ଆଗେ ଆଗେ, ହନୁଅଜା ତା ପଛରେ, ପୁଣି ତା ପଛରେ ଠେକୁଆ ମାଉସୀ ।

ସୁନା—ସେଠୁ କ'ଣ ହେଲା ଗୁରୁଜୀ !

ଗୁରୁଜୀ—ମିଲି ଆଉ ପଣ୍ଡୁ ବାଇଆ ନନା ପାଖକୁ ଧାଇଁ ଗଲେ । ପଣ୍ଡୁ ଭଁ-ଭଁ କରି ବାଇଆର ପିଠି ଉପରକୁ ଉଠିଗଲା । ମିଲି ଗୋଡ଼ଯାକ ଗୁଡ଼ିଚୁଡ଼ି ପକାଇଲା ।

ବାଇଆ ମିଲିକୁ କହିଲା—ମିଲି ଲୋ ! ଘର କଥା କ'ଣ ?

ମିଲି କହିଲା,— "ବାପା ଡାକ ଦିଏ ବାଇଆ,
ଘରକୁ ବେଗେ ରେ ଚାଲିଆ ।
ତୋ' ଭାଇ ଶୁକୁଟା କାନ୍ଦୁଛି,
ବାଇ ଭାଇ ବୋଲି ଡାକୁଛି ।
ବାପା ଦାନା ନାହିଁ ପେଟରେ,
ଲାଗିଲାଣି ଅଣ୍ଟା ଖଟରେ ।

ସୁନା—ଗୁରୁଜୀ ! ବାଇଆ କାନ୍ଦିଲା କି ?

ଗୁରୁଜୀ—ହଁ, ତା' ଆଖିରୁ ଦି'ଧାର ଲୁହ ଗଡ଼ିପଡ଼ିଲା ।

ହନୁଅଜା କହିଲା — ଆରେ ବାଇ ! ଭାବୁଛୁ କ'ଣ ? ଘରକୁ ଚାଲ ।

ତାଙ୍କ ଗାଁ ମୁଣ୍ଡରେ କେତେ ପିଲା ଖେଳୁଥିଲେ । ବାଇଆକୁ ଦେଖି ସେମାନେ ହୋ' କରି ଉଠି ବାଇଆ ଆସିଲା, ବାଇଆ ଆସିଲା ବୋଲି ଗୋଟାଏ ହୁରି ପକାଇଲେ । ଘରେ ପହଞ୍ଚିଲା । ତା' ବାପା ତାକୁ ଝୁରି ଝୁରି ରୋଗରେ ପଡ଼ିଛନ୍ତି । ଦେହଟା କଣ୍ଟା ହୋଇଯାଇଛି ।



ତା' ମା ମାଣ୍ଡିଆ ଜାଉ ଘାଣ୍ଟୁଥିଲା । ବାଇଆ ଦୁଆରେ ଯାଇ ପହଞ୍ଚିଲା । ବାଇଆ ମା' ବାଇଆର ଆସିବାର ଖବର ଜାଣି ଘରୁ ବାହାରିପଡ଼ି ତାକୁ କୁଣ୍ଢାଇ ପକାଇଲା । ଗାଲରେ ଚୁମା ଦେଲା ।

ବାଇଆ ମୁଣ୍ଡ ନୁଆଁଇ ତା' ମା'କୁ ଜୁହାର କଲା ।

ସୁନା—ସେଠୁ କ'ଣ ହେଲା ?

ଗୁରୁଜୀ – ବାଇଆ ମା' ବାଇଆକୁ ପଚାରିଲା, ସେମାନେ କିଏ କିଏ ?

ବାଇଆ କହିଲା—ମୋ ହନୁଅଜା ଓ ଠେକୁଆ ମାଉସୀ ।

ବାଇଆ ମା' ଦ'ଟା ଡାଲରେ ପାଣି ଆଣି ସେମାନଙ୍କୁ ଗୋଡ଼ ଧୋଇବାକୁ ଦେଲା ।

ଏତକବେଳେ ରାଧୁମା' ବାଇଆମା'ଙ୍କୁ କହିଲା,"ଖୁଡ଼ୀ ଲୋ ! ତମ ଘରେ ତ ଆଜି କୁଣିଆ ପହଞ୍ଚିଛନ୍ତି, ଆଜି ତଅଣ ରାନ୍ଧିଛୁ ?

ବାଇଆ ମା' କହିଲା – ଝିଅ ଲୋ ! ଆଜି ପୋଇଶାଗ ଖରଡ଼ିଛି ।

ସୁନା—ଗୁରୁଜୀ ! ରାଧୁମା' କିଏ ?

ଗୁରୁଜୀ—ପାଖ ପଡ଼ଶା ଘର, ଗୋଟିଏ ପିଲା ନାଁ—ରାଧୁ । ସେ ହେଉଛନ୍ତି ରାଧୁମା' । ବାଇଆ ମା' ହନୁଅଜା ଓ ଠେକୁଆ ମାଉସୀକୁ କୁଣିଆ କଲେ । ହନୁଅଜା ସବୁକଥା ବାଇଆ ମା' ଆଗରେ କହିଲା । ସଞ୍ଜ ହେଲା । ଗାଇ, ବାଛୁରୀ ଗୁହାଳକୁ ଆସିଲେ । ସମସ୍ତେ ଖାଇପିଇ ଶୋଇଲେ ।

ସୁନା—ସେଠୁ କ'ଣ ହେଲା ଗୁରୁଜୀ !

ଗୁରୁଜୀ—ରାତ ପାହି ଫରଚ୍ ହେଲାବେଳକୁ ହନୁଅଜା ଓ ଠେକୁଆ ମାଉସୀ ବାଇଆ ମା'ଠୁଁ ମେଲାଣି ମାଗି ଜଙ୍ଗଲକୁ ପଳାଇଗଲେ ।

ସୁନା—ବାଇଆ କ'ଣ କଲା ?

ଗୁରୁଜୀ- ବାଇଆ ତା' ମା'କୁ କହିଲା, "ମା' ମୁଁ ପାଠପଢ଼ି ଯିବି । ମୋ ବସ୍ତାନୀ ଦେ । ତା ମା' କହିଲା, "ମୁହଁଧୋଇ ଦାନ୍ତ ଘଷ, ପାଟିରେ ମୁଠେ କଛି ପକାଇ ଦେ । ବାଇଆ ସେୟା କଲା । ବସ୍ତାନୀ ଧରି ବାହାରିଲା । ରାଧୁମା' ଦେଖି ଗୀତ ପଦେ ବୋଲିଦେଲା ।

ଦାଣ୍ଡ ଦୁଆରେ କିଏ ରେ,<br>
ବସ୍ତାନୀ ଧରି ଯାଏ ରେ ।

ବାଇଆ କହିଲା —   ମୁଁ, ମୁଁ ବାଇଆ,
ପାଠ ପଢ଼ି ହେବ ଆଗୁଆ ।



ବାଇଆ ସେହି ଦିନଠାରୁ ଇସ୍‌କୁଲକୁ ପାଠ ପଢ଼ିବାକୁ ଗଲା । ଗୁରୁଜୀଙ୍କ ଆଗରେ ସବୁ ଘଟଣା ଗୋଟି ଗୋଟି କରି କହିଲା । ବାଇଆ ପାଠପଢାରେ ମନଦେଲା । ତା' ସାଙ୍ଗସାଥୀ ତାକୁ ଭଲ ପାଇଲେ । ଗାଁ ଲୋକେ ତା'କୁ ଆଦର କଲେ । ବାପା ମା'ଙ୍କ ବୋଲ ମାନିଲା । ଗୁରୁଜୀ ତା'ର ପାଠପଢ଼ା ଦେଖି ତାକୁ ବାଇଧର ବୋଲି ଡାକିଲେ ।

ସୁନା—ସେଠୁ କ'ଣ ହେଲା ଗୁରୁଜୀ ?

ଗୁରୁଜୀ— ଗପ ସରିଲା,
ଫୁଲ ଫୁଟିଲା,
ଦାସ ଛୁଟିଲା,
ବାଇଧର ଭଲ ପିଲା ହେଲା ।

ଗୁରୁଜୀ କହିଲେ—ଆରେ ସୁନା ! ତୋତେ ଏ ଗପଟି ଭଲ ଲାଗିଲା କି ନା ?

ସୁନା କହିଲା—ହଁ, ଗୁରୁଜୀ ।

ଗୁରୁଜୀ—ଆରେ ସୁନା ! ପାଠପଢ଼ା ବେଳ ହେଲାଣି । ଇସ୍କୁଲକୁ ପାଠ ପଢ଼ି ଯା ।

ସୁନା—ହଁ, ଗୁରୁଜୀ ! ଗାଧୋଇ ଖାଇସାରି ବସ୍ତାନୀ ଧରି ଯିବି ।

---